# ପାଠକ ସନ୍ଧାନରେ.....




ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

ପାଠକ ସନ୍ଧାନରେ.....


କଳ୍ପନା ଓ ରଚନା : ବିନୟ କୃଷ୍ଣ ପଟ୍ଟନାୟକ

ଅଙ୍କନ ଅସିତ୍ ଦାସ

ପ୍ରକାଶକ ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର - ୭୫୧୦୦୩.
ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା ଏରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।

ମୁଦ୍ରକ କୋଣାର୍କ ପ୍ରିଣ୍ଟର୍ସ

ମୂଲ୍ୟ ତିନି ଟଙ୍କା ମାତ୍ର

ପ୍ରକାଶ କାଳ ଜାନୁଆରୀ ପହିଲା, ୧୯୯୭


ଏହି ପୁସ୍ତିକାଟି '**ଖୁସିରେ ପଢିବା ଅଭିଯାନ**' (Jan Va chan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା [illegible] ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦୀର୍ଘସ୍ଥାୟୀ ଉଦ୍ୟମ !


● In search of Readers ● Author - Binaya Krushna Pattanayak ● Illustrator - Asit Das ● Published by B.G.V.S., Orissa ● Price - Rs. 3.00 ● Publication Period - 1st January 1997.

ଧନେଇ ନଈ କୂଳରେ ଗାଁଟିଏ । ନାଁ ତା'ର ପାଇକଯମୁନା । ଏହି ଗାଁରେ ଗୋଟିଏ ବହିଘର ଥିଲା । ଗାଁରେ ଦୁଇଜଣ ବୁଢା ବୁଢୀ ଏହାକୁ ଖୋଲିଥିଲେ । ଦୁହେଁ ଥିଲେ ଏହି ଗାଁର ପିଲା । ଗାଁ ପାଠଶାଳାରେ ସେମାନେ ପାଠ ପଢିଥିଲେ । ଅଧିକା ପଢିବା ପାଇଁ ଦୁହେଁ ବୋଇରାଣି ଗଲେ । ବୁଢା ଅଧିକା ପଢି ଚାକିରୀ କଲେ । ବୁଢୀ ବି ପାଠ ପଢି ଚାକିରୀ କଲେ । ଏଥର କିଏ କୁଆଡେ ଚାଲିଗଲେ । ବାହା ହୋଇ ପିଲା ଛୁଆଙ୍କୁ ନେଇ ରହିଲେ । କିନ୍ତୁ ସେମାନଙ୍କ ଭିତରେ ପଢିବା ବେଳର ସାଙ୍ଗ ସମ୍ପର୍କ ରହିଥିଲା ।

ପ୍ରତି ବର୍ଷ ମେଳା ମଉଛବ ବେଳେ ସେମାନେ ଗାଁରେ ଏକାଠି ହେଉଥିଲେ । ଏବେ ଦଶହରାରେ ଦୁହେଁ ଗାଁରେ ପହଞ୍ଚି ଥାନ୍ତି । ଦିନେ ସକାଳେ ଦୁହେଁ ବସି ଦୁଃଖ ସୁଖ ହେଉଥାନ୍ତି । ଏବେ ଦୁହେଁ ବୁଢା ବୁଢୀ ହୋଇ ଯାଇଥାନ୍ତି । କାଲିର ଗାଁ, କାଲିର ପିଲା, ଆଜିର ସମୟ..... ଏମିତି କେତେ କଥା ଚାଲିଲା । ଦୁହେଁ ଯାହା କିଛି ନୂଆ କାମ କରିଥିଲେ, ସେ ବିଷୟରେ କୁହା କୁହି ହେଲେ । ବୁଢୀ କହିଲେ - ଗାଁରେ ବହିଘରଟିଏ କଲେ କିମିତି ହୁଅନ୍ତା ?

ବୁଢାଙ୍କ ମନକୁ ବି କଥାଟା ପାଇଲା । ଗାଁର ଲୋକେ, ବିଶେଷ କରି ପିଲା ଓ ମହିଳାମାନେ, ଏଥିରୁ ବେଶ୍ ସୁବିଧା ପାଆନ୍ତେ । ବହିରୁ ସେମାନେ ଦୁନିଆର ଦେଖା ଅଦେଖା କେତେ କଥା ଜାଣିବେ । ସେ ସବୁକୁ ସେମାନେ ନିଜର ଜୀବନ ଓ ଚଳଣି ସହ ତୁଳନା କରିବେ । କାମ ଓ ଜୀବନ ବିଷୟରେ ନୂଆ ନୂଆ ଧାରଣା ପାଇବେ ।

ନୂଆ ନୂଆ ସପନ ଦେଖି ପାରିବେ । ଜୀବନରେ ଖୁସି, ସୁଖ ଓ ଆଶା ଦେଖି ପାରିବେ । ସେମାନଙ୍କର ନିଜ ବିଶ୍ୱାସ ଓ ସାହସ ବଢ଼ି ପାରିବ । ସେମାନେ ଆଉ କାହା ପଛରେ ଧାଇଁବେନି । ନିଜ ନିଜ ରୁଚିର ବାଟ ସବୁ ଖୋଜି ପାରିବେ । ପ୍ରତି ଲୋକ ସ୍ୱାଧୀନତାର ହସ ହସି ପାରିବ । ଗାଁଟା ଛାଏଁ ଛାଏଁ ଉଧେଇ ଚାଲିବ ।




ବହି ମାଧ୍ୟମରେ କ'ଣ କ'ଣ ହୋଇ ପାରିବ, ତା'ର ସୀମା କାହିଁ ? ସେଦିନ କଥାଟା ବି ଲମ୍ବି ଚାଲିଲା । ବହିକୁ ନେଇ ଆଶା, ଖୁସି ଓ ସପନ ବି ସେତିକି ବଢ଼ିଲା । ବେଳ ବେଶ୍ ଗଡ଼ି ଯାଇଥାଏ । ଏଥର ସେମାନେ ଉଠିଲେ । ଠିକ୍ କଲେ ଦୁହେଁ ମିଶି ବିଭିନ୍ନ ବିଷୟରେ ବହି ଏକାଠି କରିବେ ।

ଦୁହିଁଙ୍କ ଆଶା ଯେତିକି, ଉତ୍ସାହ ବି ସେତିକି ଥିଲା । ଦୁହେଁ ଲାଗି ପଡ଼ିଲେ । ନିଜେ ଲାଗିବା ସାଙ୍ଗକୁ ସାଙ୍ଗ ସାଥିଙ୍କୁ ବି କହିଲେ । ମାଗିବାରୁ କେହି କେହି କିଛି ବହି ବି ଦାନ କଲେ । ବରଷକର ଚେଷ୍ଟାରୁ ଭଲ ଫଳ ମିଳିଲା । ତା'ପର ଦଶହରା ଆସିଲା । ସେତେବେଳକୁ ଦୁହେଁ ମିଶି ଛଅଶହ ବୟାଅଶୀଟି ବହି ଏକାଠି କରି ସାରିଥିଲେ । ରଙ୍ଗ ବେରଙ୍ଗ କେତେ ରକମର ବହି । ଦୁଇ ସାଙ୍ଗ ବସି ବହି ସବୁକୁ ଓଲଟାଇଲେ । ତାଙ୍କ ଖୁସି କହିଲେ ନ ସରେ ।

ଦଶହରା ଦିନ ଗାଁରେ ସଭାଟିଏ ବସିଲା । ଗାଁର ସଭିଏଁ ଆସିଲେ । ବୁଢ଼ା, ବୁଢ଼ୀ ବହିର ମହିମା ଗାଇ ଚାଲିଲେ । ଗାଁ ଲୋକ ସବୁ ଶୁଣିଲେ । ବହି ସବୁକୁ

ଦେଖିବା ପାଇଁ କେତେ ଜଣ ଉଳୁମି ଉଠିଲେ । ବୁଢା, ବୁଢୀଙ୍କର ଆଶାର ସପନ ଆହୁରି ବଢିଗଲା । ସେମାନେ ଭାବିଲେ, ଗାଁ ଲୋକ ତାଙ୍କ କଥାକୁ ବୁଝିଛନ୍ତି । ଗାଁ ଲୋକ କହିଲେ- ବହିଗୁଡିକୁ ଗାଁର ମେଳଣ ଘରେ ରଖାଯିବ ।

ଦିନକ ପାଇଁ ଗାଁର ଦୁଇଜଣ ଟୋକେଇ ବହିଥାକ ବସେଇବାରେ ଲାଗି ପଡିଲେ । ଉପର ବେଳା ବହିଗୁଡିକୁ ବିଷୟ ଅନୁସାରେ ବାଣ୍ଟି ଦିଆଗଲା । ଗଛଲତା, ଆକାଶ, ମଣିଷ, ସମାଜ, ପାଠଶାଠ, ଖାଦ୍ୟ, ଯାନ ବାହାନ, ରୋଗବଇଦ, ଚାଷ, ଆଚାର, ଜୀବନ, ପୁରାଣ,..... ଏମିତି ବିଭିନ୍ନ ବିଷୟ । ବୁଢା, ବୁଢୀ ଲାଗି ପଡି ବହିଗୁଡିକୁ ବିଷୟ ଅନୁସାରେ ସଜାଡିଲେ । ତାଙ୍କର କାମ ଦେଖିଲେ ଲାଗୁଥିଲା ଯେପରି ସେମାନେ ନିଜର ଘରଟିକୁ ହିଁ ସଜାଡୁଛନ୍ତି । କାମ ସରିଲା ବେଳକୁ ରାତି ହେବାକୁ ବସିଲାଣି । ଥକା ଦେହରେ ପକ୍କା ସପନ ଧରି ଦୁହେଁ ଯେ ଯା' ଘରକୁ ଫେରିଲେ ।

ତା' ପରଦିନ ବହିଘର ଖୋଲାଗଲା । ବୁଢା, ବୁଢୀ ମିଶି ଦିନ ସାରା ବୁଝାଉ ଚାଲିଲେ । ଗାଁର ଯିଏ ଯେତେବେଳେ ପହଞ୍ଚିଲେ ବି ସେମାନେ ତାଙ୍କୁ ବହି ବିଷୟରେ କହିଲେ । ଅମୁକ ବହିରେ ଅମୁକ ବିଷୟ, ସମୁକ ବହିରେ ସମୁକ ଲେଖା, ..... । ଉପର ବେଳାକୁ ଦୁହିଁଙ୍କର ତଣ୍ଟି ବସି ଯାଉଥାଏ । ତଥାପି ସେମାନେ କହି ଚାଲିଥିଲେ । ତାଙ୍କ କଥା ଅଧା ଅଧି ଶୁଭୁଥିଲା । ବାକି ଅଧାକ ତାଙ୍କ ହାତ ହଲା ଓ ମୁହଁ ଭଙ୍ଗୀରୁ ଠଉରାଇବାକୁ ପଡୁଥିଲା ।

ଦିନକ ଭିତରେ ଗାଁର ଅଧିକାଂଶ ଘରୁ ଲୋକ ଆସିଥିଲେ । ସେମାନେ ବୁଢା, ବୁଢୀଙ୍କର କଥା ଶୁଣି ଥିଲେ ଓ ବହିଗୁଡିକ ଉପରେ ଆଖି ପକାଇଥିଲେ । କିନ୍ତୁ ଅଧିକାଂଶ ଆଖି ବେଶ୍ ଚଞ୍ଚଳ ସନେ ହେଉଥିଲା । କମ୍ ସମୟ ଭିତରେ ଗୁଡାଏ ରଙ୍ଗୀନ ଛବି ଦେଖି ପକାଇବାକୁ ସେମାନେ ଚାହୁଁ ଥିଲେ । ସେମାନଙ୍କ ପାଇଁ ବହି ଜିନିଷଟି ସେପରି କିଛି ଗୁରୁତ୍ୱପୂର୍ଣ୍ଣ ନଥିଲା ।

ଖାଇବା, ଖେଳିବା, ଖୁସି ମଉଜ କରିବାରେ ହିଁ ସେମାନଙ୍କ ଆନନ୍ଦ ସୀମିତ ଥିଲା । ବହି ଓଲଟାଇବା ତାଙ୍କ ପାଇଁ ବିରକ୍ତିକର ଥିଲା । ଯିଏ ବି' ଅକ୍ଷର ପଢିଥିଲେ,



ସେମାନେ କେହି ବି ବହିର ମଜା କି ଉପକାର ଜାଣି ନଥିଲେ । ସ୍କୁଲ ପାଠ ତାଙ୍କ ପାଇଁ କେବେ ବି ମଜାଦାର କି ମନଛୁଆଁ ନ ଥିଲା । ଘରର ଚାପରେ ହିଁ ସେମାନେ ଶ୍ରେଣୀରେ ସମୟ କଟାଉଥିଲେ ।

ଆଜି ବି କଥାଟି ସେପରି ଥିଲା । ନ ଆସିଲେ ଜାଣେ କିଏ କ'ଣ କହିବେ, କି ଖରାପ ଭାବିବେ । ଉପରଠାଉରିଆ ଭାବେ ସେମାନେ ବୁଢ଼ା, ବୁଢ଼ୀ କାମର ପ୍ରଶଂସା ବି କଲେ । ତେଣେ ବୁଢ଼ା, ବୁଢ଼ୀ ଲୋକଙ୍କର ମନୋଭାବକୁ ଦେଖୁ ନଥାନ୍ତି । ସେମାନେ ଯଥାସମ୍ଭବ ଲୋକଙ୍କୁ ବୁଝାଇ ଚାଲିଥାନ୍ତି । ଏ ବହିରେ ଏଇଆ ଅଛି, ସେ ବହିରେ ସେଇଆ ଅଛି । ତୁମେ ଏ ବହିଟି ପଢ଼, ତୁମ କାମ ପାଇଁ ଏ ବହିଟି ବଢ଼ିଆ । ..... ଏ ଦୁନିଆଁରେ ପ୍ରିୟ ପାଦାକୁ ଯେତେ କହିଲେ ବି ସବୁକୁ କେହି ଶୁଣନ୍ତି ନାହିଁ । ଯେଉଁଠି ନିଜ ଚିନ୍ତାର ମେଳ ଥାଏ ବା ଲାଭର ବାଟ ଥାଏ ସେଠାରେ ହିଁ ଲୋକ କାନାନ୍ତି । ବାକି ସମୟରେ ଆଲୋଚନା ସବୁ ଉପରଠାଉରିଆ ହୁଏ ।

ବୁଢା, ବୁଢୀ ଏମନ୍ତ ଚିନ୍ତାରେ ଭାବିବାକୁ ତିଆରି ନଥିଲେ । ସେମାନେ ନିଜର ଆମିତ ବଳକୁ ହିଁ ଜାଣିଥିଲେ । ତେଣୁ ଯେତେ ପାରିଲେ ସେମାନେ ବହି ଟାଣିଲେ । ସନ୍ଧ୍ୟା ଯାଏଁ ସେମାନେ ଖଟିବାରେ ଲାଗିଲେ । ସେତେବେଳକୁ ତାଙ୍କ ଅବସ୍ଥା ଖରାପ । ପୂରା ଥକି ଯାଇଥାନ୍ତି । ନିଜର କଠିନ ଖଟଣି ସାଙ୍ଗକୁ ଲୋକଙ୍କ ଆଦର ଓ ପ୍ରଶଂସା ମିଶି ତାଙ୍କୁ ଅନେକ ଆଶା ଦେଖା ଯାଉଥାଏ । ଆଗକୁ ଗାଁରେ ସୁଫଳ ଫଳିବାର ଆଶ ରଖି ଯିଏ ଯା' ଘରକୁ ଫେରିଲେ ।

ତାପରିମତ ଦୁଇ ଦିନ ଯାଏଁ ସେମାନେ ବହିଘର ଖୋଲି ବସିଲେ । ପ୍ରତିଦିନ କିଛି କିଛି ଲୋକ ଆସିଲେ । ଏଥର ସେମାନଙ୍କର ଫେରିବା ବେଳ ଆସିଲା । ତା ଆଗରୁ ସେମାନେ ଗାଁର ଜଣେ ଲୋକକୁ ବହି ଘରର ଦାୟିତ୍ୱ ଦେଲେ । ସେ ବି ଖୁସିରେ ରାଜି ହେଲା । ତା'ର ନିଜର ଘର ନଥିଲା । ତେଣୁ ସେ ବି ରହିବା ପାଇଁ ଜାଗାଟିଏ ପାଇଗଲା ।

ଘରକୁ ନଫା ସୁରୁଖା ରଖି ସେ ବହି ଘରଟିକୁ ଚଳାଇବା ପାଇଁ ରାଜି ହେଲା । ବୁଢା ବୁଢୀ ନିଜ କାମଟି ତୁଲାଇଛନ୍ତି ଭାବି ଯିଏ ଯାହା ଜାଗାକୁ ଫେରିଗଲେ । ଗାଁ ଲୋକମାନେ ବି କାମର ପ୍ରଶଂସା କଲେ । ଫେରିବା ବାଟରେ ଯାହା ସାଙ୍ଗରେ ଦେଖା ହେଲା, ବୁଢା ବୁଢୀ ତାଙ୍କୁ ବହି ଘର କଥା ବୁଝିବାକୁ କହିଲେ । ସମସ୍ତେ ହଁ ଭରୁଥିଲେ ।

ଗାଁର ବାବୁଲି ଭାଇ ବହି ଘରେ ରହିଲା । ସେ ଆଜି ବହି ଘର ଖୋଲିଲା । ଗାଁ ଲୋକମାନେ ବହି ପଢ଼ିବାକୁ ଆସିବେ । ବହି ସବୁ ହାତରୁ ହାତ ହୋଇ କେତେ ହାତ ହେବ । ତାକୁ ପୂରା ନଜର ରଖିବାକୁ ହେବ । ମଉସା, ମାଉସୀମାନେ କେତେ ଅଳି କରି କହିଛନ୍ତି ତାକୁ - ବହିର ଯତନ ନେବ । ମନ ଦେଇ ପଢିବ । ଆଲୋଚନା କରିବ ।

ଏଥର ଗାଁରେ କୋଟିଏ ନୂଆ ସମୟ ଆସିଯିବ । ବାବୁଲି ଆଜି ସକାଳୁ ଉଠି କାମଦାମ ସାରି ତିଆର । ଘର ଦୁଆର ବି ଝଡା ଝଡି ସରିଛି । ସୂର୍ଯ୍ୟ ପୂରୁବ ଦିଗର

ଜଡ଼ଧ ଗଛର ମୂଳରୁ ଉଇଁ ଚୂଳକୁ ଉଠିଲେ । ମୁଣ୍ଡ ଉପରକୁ ଉଠି ପଶ୍ଚିମକୁ ଢଳିଲେ । ଏ ଯାଏଁ କାହାର ଜଣକର ବି ଦେଖା ନାହିଁ । ଚାହିଁ ଚାହିଁ ବେଳ ବୁଡ଼ିଲା । ସଞ୍ଜ ବେଳକୁ ଚଉଠି ମଉସା ଆସିଲେ । ସେ ଆଗରୁ ଆସି ନଥିଲେ । ପାଖ ଗାଁକୁ ଯାଇଥିଲେ । ଚିଡ଼ିଆଖାନା ବୁଲି ଗଲା ଭଳି ସେ ବହିଗୁଡ଼ାକ ଉପରେ ଆଖି ଘୂରାଇ ଆଣିଲେ । ସେତିକିରେ କାମ ଶେଷ । ବାବୁଲି ଭାଇ ତାଙ୍କୁ ନୂଆ ପାଇ ବୁଢ଼ା ବୁଢ଼ୀଙ୍କ ପରି ବୁଝାଇବାକୁ ଚେଷ୍ଟା କଲା । ମଉସା କେବଳ ମୁଣ୍ଡ ଟୁଙ୍ଗାରିଲେ । ବାବୁଲିର ପିଠିକୁ ଥାପୁଡ଼ାଇ ଦେଲେ । ବୁଢ଼ା ବୁଢ଼ୀ ଭଲ କାମଟିଏ କରିଛନ୍ତି କହି ବାହାରି ଗଲେ ।




ତା ପରଦିନ ବି ସେହି ଏକା ଅନୁଭୂତି । ଜଣେ ବି କେହି ଆସିଲେ ନାହିଁ । ଦିନ ପରେ ଦିନ ଗଡ଼ି ଚାଲିଲା । କିନ୍ତୁ ଲୋକଙ୍କର ଦେଖା ନାହିଁ । ସପ୍ତାହକ ବେଳକୁ ବାବୁଲିର ମୁହଁ ପୂରା ଶୁଖିଗଲା । ତା ମନ ମରିଗଲା । ତା'ର ବି ବହି ପଢ଼ିବା ପ୍ରତି ବିଶେଷ ରୁଚି ନଥିଲା । କେବଳ ପୁରାଣ ବହିରୁ ଶୁଣିବା ଓ ବହି ଓଲଟାଇବାରେ ହିଁ

ତା ବହି ପତା ସୀମିତ ଥିଲା । ସେ ବି ତା' କାମରେ ଅବହେଳା କଲା । ବହି ଘରଟି କ୍ରମେ ଗୋଟିଏ କବରଖାନା ପାଲଟିଗଲା । ବହିଗୁଡ଼ିକ ଥାକରେ ସେପରି ପଡିଥାନ୍ତି ।

ଦିନକର କଥା । ସେତେବେଳକୁ ବହିଘରଟିର ରୂପ ଆଗଠୁ ପୂରା ବଦଳି ଯାଇଥାଏ । ପାଞ୍ଚ ମାସ ହେଲା ଘରଟିର ଝରକା କବାଟ ଖୋଲା ହୋଇ ନଥାଏ । ବହିଗୁଡିକ ସେତିକି ଦିନ ଧରି ଆଲୁଅ କି ତାଜା ପବନ ପାଇ ନଥାନ୍ତି । ହାତକୁ ହାତ ହୋଇ ପୃଷ୍ଠା ଓଲଟାଇବା ବେଳେ ତାଙ୍କର ବି ଟିକେ ଚାଲବୁଲ, ବ୍ୟାୟାମ ଓ ମନଖୁସି ହୋଇଯାଏ । କିନ୍ତୁ ସେ ଦିନଠୁ ସେମାନେ ତ ଅଚଳ । ବସି ବସି ଭା'ରି ଅଳସ ଲାଗୁଥାଏ । ହାତ ଗୋଡ ସବୁ ଲାଖି ଯାଇଥାଏ ।

ବୁଢିଆଣୀଗୁଡିକ ପୂରା ଦମ୍‌ରେ ତାଙ୍କ ନକ୍‌ସା ଆଙ୍କି ଚାଲିଥାନ୍ତି । ଏ ଥାକରୁ ସେ ଥାକ, ଏ ବହିରୁ ସେ ବହିକୁ ଛୁଇଁ ସେମାନେ ତାଙ୍କର ନିଖୁଣ ଜାଲ ବୁଣି ଥାନ୍ତି । ଯେଉଁଠି ମଣିଷ ଯେତେ ନିଷ୍କ୍ରିୟ, ସେଠାରେ ସେମାନଙ୍କ ଯାଦୁ ଓ ରାଜୁତି ସେତିକି ବେଶୀ । ଉଇ ଲାଗି ବହି ଥାକ ଗୁଡିକର ଗୋଡ ଗୋଦରା ଗୋଡ ପରି ଦିଶୁଥାଏ । ସବୁ ଜିନିଷ ଉପରେ ଇଞ୍ଚେ ବହଳର ଧୂଳି ଜମି ଯାଇଥାଏ ।

ତଳ ଥାକର କବିତା ବହିଟା ଜୋର୍‌ରେ ଛିଙ୍କିବାରେ ଲାଗିଲା । ଛିଙ୍କିବା ସାଙ୍ଗକୁ ସେ ତା' ଡେଣା ବାଡେଇ ଫଡ୍ ଫଡ୍ ଶବ୍ଦ କରୁଥାଏ । ତା ଛିଙ୍କ ଶୁଣି ଆଉ କେତୋଟି ବହି ବି ଝାଡି ଝୁଡି ହେଲେ । ସେମାନେ ତା' ଆଡକୁ ଚାହିଁଲେ । ଆହୁରି ଧୂଳି ଉଡି ସମସ୍ତଙ୍କ ନାକ, ଆଖିରେ ପଶିଲା । ସମସ୍ତେ ଜୋର୍‌ରେ ଛିଙ୍କିବାରେ ଲାଗିଲେ । ପ୍ରଥମ ବହିଟି କହିଲା, "ଦେଖ ସାଥିମାନେ, ଏଠାରେ ଆଉ ରହି ହେବ ନାହିଁ । ମୋ ନାକ, କାନରେ ଧୂଳି ପଶି ମୁଁ ଅଣନିଃଶ୍ୱାସୀ ହୋଇ ଯାଉଛି । ଛିଙ୍କି ଛିଙ୍କି ମୁଁ ଅଥୟ ହୋଇ ଗଲିଣି ।

ଏକଥା ସରିଲା ବେଳକୁ ଆଉ ଥାକର ମୋଟା ବହିଟିଏ ଧକେଇବାରେ ଲାଗିଲା । ଏହି ଶବ୍ଦକୋଷଟି ବେଶ୍ ମୋଟା । ଉଇ ଲାଗି ଏହାର ଗୋଟିଏ ପଟକୁ ଖାଇ ସାରିଥାନ୍ତି । ପ୍ରାୟ ୪୦-୫୦ ପୃଷ୍ଠା କାଗଜକୁ ଠାଏ ଠାଏ ଖାଇ ମାଟି ନେସି

ପକାଉ ଥାନ୍ତି । ବହିଟି ତା'ର ଗୋଟିଏ ହାତକୁ ହଲାଇ କଷ୍ଟରେ କହିଲା, ''ମୁଁ କ'ଣ କରିବି କହିଲ ? ମୁଁ ଯେତେ କାକୁତି ମିନତି ହେଲେ ବି ଏହି ଅସୁର ଉଈଗୁଡାକ କ'ଣ ମୋ କଥା ଶୁଣୁଛନ୍ତି ? ତାଙ୍କୁ ମୋ ମାଉଁସ ଜୁଆଡେ ଭା'ରି ସୁଆଦ ଲାଗୁଛି । ସେମାନେ ଦିନ ରାତି ଲାଗି ମତେ ଜୀଅନ୍ତା ଖାଇ ଯାଉଛନ୍ତି । ''

'' ମୋ ଆୟୁଷ ଆଉ ବେଶୀ ଦିନ ନୁହେଁ । ସେମାନେ ଯେଉଁ ବେଗରେ ମତେ ଖାଇ ଚାଲିଛନ୍ତି, ଆଉ ଦଶଟା ଦିନରେ ସବୁ ସଫା ହୋଇ ଯିବ । ତମେମାନେ ମତେ ଆଉ ଦେଖି ପାରିବ ନାହିଁ । '' ସେ ଆଉ କିଛି କହି ପାରିଲା ନାହିଁ । ବାଘ ମୁହଁରେ ହରିଣ ପରି ସେ ହତାଶ ହୋଇ କାନ୍ଦିବାରେ ଲାଗିଲା ।




ସମସ୍ତେ ତା' ରୂପ ଦେଖି ଡରରେ କଳା କାଠ ପଡିଗଲେ । ଏ ଯାଏଁ ନାଟକ ବହିଟି ମୁହଁ ବୁଲେଇ ବସିଥିଲା । ତା' ମୁହଁରୁ ବୁଢିଆଣୀ ଜାଲ ସବୁ ଦାଢି ପରି ଲମ୍ବିଥାଏ । ସେ ଦାଢିକୁ ଆଉଁସି ଆଉଁସି କହିଲା, ''ସାଥିମାନେ, ଦେଖ । ଯେଉଁ

ନାଟକ ବହି ନେଇ ମୁଁ ରଙ୍ଗମଞ୍ଚରେ ନାଟକ ସବୁ କେତେ ଜମିଯାଏ, ସେ ବହି ଆଜି କେତେ ଉଦାସ ! ମୋ ଭିତରେ ସାତ କାମୁଡା, ଆଦି କୀଟ ପଶି ମତେ କୁଟୁରାଇ ଖାଇବା ଲାଗିଛନ୍ତି । ତାଙ୍କ ଆକ୍ରମଣରେ ମୁଁ ବି ଅଥୟ । ଏଠାରେ ଆଉ ରହି ହେବ ନାହିଁ ।''

ଉପର ଥାକରେ ଚୁଟ୍ ଚୁଟ୍ ଶବ୍ଦ ହେଲା । ଏ ଯାଏଁ ଚୁଟିଆ ମୂଷାଟା ଚୁଟ୍‌ର୍, ଚୁଟ୍‌ର୍ ଶବ୍ଦ କରି ବିଜ୍ଞାନ ବହିଟାକୁ କାଟି ଚାଲିଥିଲା । ବହିଟି ଥିଲା ଭାରତୀୟ ବୈଜ୍ଞାନିକ ସି.ଭି. ରମଣଙ୍କ ଗବେଷଣା ଉପରେ । ଏହି କାମଟି ପାଇଁ ରମଣ ବିଜ୍ଞାନୀ ସମାଜରେ ଯଥେଷ୍ଟ ଆଦର ପାଇଥିଲେ । ତାଙ୍କୁ ସବୁଠୁ ବଡ଼ ପୁରସ୍କାର ବି ମିଳିଥିଲା ।

କିନ୍ତୁ ମୂଷା କି ବୁଝେ ରମଣଙ୍କ ମହାନ କାମ । ସେ କାଗଜ ଟୁକୁଡା ପାଇବା ପାଇଁ ନିର୍ବିକାର ଭାବରେ ବହିଟିକୁ କାଟି ଚାଲିଥାଏ । ଏସବୁକୁ ଜମାଇ ସେ ତା'ର ଆରାମଦାୟକ ଶେଯଟି ବନାଉଥାଏ । ସେ ବହିଟି ଯନ୍ତ୍ରଣାରେ ଅଧୀର ହୋଇ ତଳକୁ ଗଳି ପଡିଲା । ତଳେ ପଡି ସେ ଛଟ ପଟ ହେବାରେ ଲାଗିଲା । କହିଲା, '' ଆଉ ନୁହେଁ....ସାଥିମାନେ.... ଆଉ ନୁହେଁ । ମୁଁ ତ ଗଲି । କିନ୍ତୁ ତୁମର ବି ଆଉ ବେଶୀ ଦିନ ନାହିଁ । ଏ ମୂଷାର ପରିବାର ବଢିଲାଣି । ସମସ୍ତେ ମିଶି ତୁମ ସମସ୍ତଙ୍କୁ ବି ମାରି ପକାଇବେ ।''

କାନ୍ଥ କଡର ଗୋଟିଏ ବହି ତା' ଦୁଃଖ କାହାଣୀ ଶୁଣାଇଲା । ଓଦା କାନ୍ଥରୁ ପାଣି ବାଜି ବହିଟି ଭିଜି ଯାଇଥିଲା । ଏହାର କାଗଜ ସଢିଯାଇ ଏଥିରେ ଫିମ୍ପି ମାଡି ଯାଇଥିଲା । ଏହାର ଭିତର ବାହାର ଚାରିଆଡେ କଳା କଳା ଛାପ ହୋଇ ଯାଇଥିଲା । ତା'ର ଅସଲ ରୂପ ଏବେ ପୂରା ବଦଳି ଯାଇଥିଲା । ତାର ପୃଷ୍ଠା ସବୁ ଲାଖି ଯାଇଥିଲା । ତା'ର ପୂରା ଦେହଟି ବଙ୍କେଇ ଯାଇଥିଲା ।

ସେ ଚେଷ୍ଟା କରି ବି ତା' ହାତ ଗୋଡ ହଲାଇ ପାରୁ ନଥାଏ । କଷ୍ଟେ ମଷ୍ଟେ କହିଲା, ' ମତେ ଟିକେ ଝାଡି ଝୁଡି ବାଗେଇ ଦିଅ । ମୁଁ ଆଉ ହଲି ବି ପାରୁନି । ବୁଢା ବୁଢୀ କୁଆଡେ ଗଲେ ? କେବେ ଫେରିବେ କେଜାଣି ? ଜଲ୍‌ଦି ନ ଫେରିଲେ

ମୋର ମତା ଶବଟି ହିଁ ପାଇବେ । ସାଥିମାନେ, ତୁମେ ଆଉ ଡେରି କର ନାହିଁ । ନିଜକୁ ବଞ୍ଚାଇବା ପାଇଁ କିଛି ଗୋଟିଏ ଉପାୟ ବାହାର କର ।

ତା' ତଳ ଥାକର ବହିଟିଏ କହିବାକୁ ଆରମ୍ଭ କଲା । ତା' ଦେହଟା ବାଁ ପଟକୁ ମୋଡି ହୋଇ ଯାଇଥାଏ । ପତଳା ବହିଟାଏ । ତା' ପାଇଁ ଡିରା ନଥିଲା । ସେ ବେଙ୍କେଇ କହିଲା, '' ମୁଁ ଆଉ ସଳଖି ପାରୁ ନାହିଁ । ମୋ ଦେହଟା ବେଳକୁ ବେଳ ଅଧିକା ବେଙ୍କେଇ ଯାଉଛି । ମତେ ନ ବାଗେଇଲେ ମୁଁ ତଳେ ପଡ଼ିଯିବ । ତଳେ ଚାଲୁଥିବା ଉଈ ଓ ମୂଷାଙ୍କୁ ଦେଖିଲେ ମୋ ପିଳେହିଟା ପାଣି ହୋଇ ଯାଉଛି ।''

ତା' ସାମନା ଥାକର ବହିଟାଏ ବରଡା ପତର ପରି ଥରୁଥାଏ । ତା' ଉପରେ ବଡ ଅସରପାଟିଏ ନିଜକୁ ଟେକି ଠିଆ ହୋଇଥାଏ । ସମସ୍ତେ ତା' ଆଡକୁ ଅନାଇଲେ । ଏତିକି ବେଳେ ଅସରପାଟା ପାଖ ଥାକଟା ଉପରକୁ ଉଡି ଚାଲିଗଲା । ଏଥର ବହିଟି ଛେପ ଢୋକୁ ଢୋକୁ କହିଲା, '' ଦେଖ, ମୋ ଉପରେ ସେ ଅସୁର ଜୀବଟା କେତେ ହଗିଛି ! ସେ ମୋ ଦେହରେ ଲାଗିଥିବା ଅଠାକୁ କୋରି କୋରି ଖାଇ ଦେଉଛି ।



ସେ ମୋ ମେରୁ ଦଣ୍ଡଟାକୁ ପୂରା ଭାଙ୍ଗି ଦେଲାଣି । ଏବେ ମୋ କାଗଜ ସବୁ ଆଉ ଆଗ ଭଳି ଗୁଚ୍ଛି ହୋଇ ରହୁ ନାହାନ୍ତି । ସେମାନେ ସବୁ ଖୋଲି ଗଲେଣି । ଆଉ ଦିନ କେଇଟାରେ ମୋର ହାତ, ଗୋଡ଼, ମୁଣ୍ଡ, ଦେହ, କଙ୍କାଳ ଆଦି ସବୁ ଅଲଗା ଅଲଗା ହୋଇଯିବ ।''

ସେ ଆହୁରି କହିଲା, '' ସେ ଅସୁରଟା କି ଦୁଷ୍ଟ ! ସେ ହଗିଲେ କି ଉକ୍ଟ ଗନ୍ଧ ହେଉଛି ସତେ ! ମୋର ଆଗର ସେହି ମଧୁର ସୁବାସ ଆଉ ନାହିଁ । ଆଗ ବୁଡା ବୁଡୀ ମତେ ପଢିଲା ବେଳେ ମଝିରେ ମଝିରେ ମୋର ସୁବାସକୁ ଶୁଙ୍ଘି ଖୁସି ହୋଇ ଯାଉଥିଲେ । କିନ୍ତୁ ଏବେ ମୁଁ ନିଜେ ମୋ ନାକକୁ ଚାପି ଧରିଛି । ଆହୁରି ଜାଣିଛ ? ସେ ଦୀଟା ଏବେ ମୋ ଉପରେ ଅଣ୍ଡା ଦେଲାଣି । ଏହା ତୁମ ସମସ୍ତଙ୍କ ପାଇଁ ବିପଦ । ଏଥିରୁ ଛୁଆ ବାହାରିଲେ ତୁମ କାହାକୁ ବି ରଖିବେ ନାହିଁ ! ''

ଅଭିଯୋଗ ପରେ ଅଭିଯୋଗ । ସବୁ ବହି କିଛି ନା କିଛି କହିବାକୁ ଚାହୁଁଥିଲେ । ସେଠାରେ ସମସ୍ତେ ଅସୁସ୍ଥ ହୋଇ ପଡିଥିଲେ । ପୁଣି ମୂଷା, ଅସରପା, ଉଇ, ବୁଢିଆଣୀ, ସାଉକାମୁଡା, ଆଦିଙ୍କ କାରବାର ଦେଖି ସେମାନଙ୍କ ଛାତି ଥରି ଉଠୁଥାଏ । ସେଠାରେ ଆଉ ଅଧିକା ସମୟ ରହିବାକୁ ତାଙ୍କର ସାହସ ହେଲା ନାହିଁ । ଯେ କୌଣସି ମୁହୂର୍ତ୍ତରେ ତାଙ୍କ ଉପରେ ଆକ୍ରମଣ ହୋଇ ଯାଇପାରେ ।

ଶେଷ ବିଚାରରେ ସବୁ ବହି ଜଣ ଜଣ ହୋଇ ଚଟାଣକୁ ଡେଇଁଲେ । ଉଇ, ଅସରପା, ମୂଷା ଆଦି ବି ଚମକି ପଡିଲେ । ବହିଗୁଡାକ କ'ଣ କରିବେ ? ବହିଙ୍କ ଡିଆଁ ମାରିବାରୁ ପ୍ରବଳ ଧୂଳି ଉଡିଲା । ଏହି ଧୂଆଁଳିଆ ପରିବେଶ ଭିତରେ ସେମାନେ ଘରର ଦୁଆର ଆଡକୁ ଚାଲିଲେ । ବାବୁଲି ଦୁଆର ମେଲି ଦେଇ କୁଆଡେ ଚାଲି ଯାଇଥାଏ ।

ସବୁ ବହିଙ୍କର କିଛି ନା କିଛି ଅସୁବିଧା ଥାଏ । ତଥାପି ସମସ୍ତେ ଟାଣି ଓଟାରି ହୋଇ ଦୁଆରବନ୍ଧ ଟପିଗଲେ । ବାହାରର ଆଲୁଅ ଓ ପବନ ପାଇ ତାଙ୍କୁ ଟିକେ ତାଜା ଲାଗିଲା । ଘୋର ବିପଦକୁ ମୁକୁଳି ଯାଇଥିବାରୁ ତାଙ୍କୁ ଖୁବ୍ ଖୁସି ଲାଗୁଥାଏ । ଦେହର କଷ୍ଟ କିଛି ବାଧୁ ନଥାଏ ।



ସେମାନେ ଚାରି ଆଡକୁ ଆଖି ପକାଇଲେ । ପାଖରେ କେହି କୁଆଡେ ନଥାନ୍ତି । ବହି ସବୁ ଗାଁ ରାସ୍ତା ଉପରକୁ ଚାଲିଲେ । ଆପଣ କେବେ ଶୁଣିଛନ୍ତି ବହିମାନଙ୍କର ଯାତ୍ରା ବିଷୟରେ ? ସେଦିନ କିନ୍ତୁ ସେମାନେ ଚାଲିଥିଲେ । ଜାଣି ନଥିଲେ କୁଆଡେ ଯାଉଛନ୍ତି । କିନ୍ତୁ ସେମାନେ ଚାହୁଁଥିଲେ କେତେ ଜଣ ଦରଦୀ ପାଠକଙ୍କୁ ।

ଆଜିର ଦୁନିଆ ଯେତେ ବାଟ ଆଗେଇଛି, ତା' ପଛରେ ବହିମାନଙ୍କର ଏକ ବିରାଟ ଭୂମିକା ରହିଛି । ଯୁଗେ ଯୁଗେ ମଣିଷର କାମ, ଚିନ୍ତା ଓ ବିଚାର ସବୁକୁ ଏମାନେ ହିଁ ଏଯାଏଁ ସାଇତି ଆସୁଛନ୍ତି । ଗତକାଲି ଓ ଆଜିକୁ ବୁଝାଇ ସେମାନେ ଆମକୁ ଆସନ୍ତା କାଲି ପାଇଁ ବାଟ କଡାଉଛନ୍ତି ।

ଅଥଚ ଆଜି ସେହି ବହିମାନେ ପାଠକ ପାଇଲେ ନାହିଁ । ପାଠକଙ୍କ ସନ୍ଧାନରେ ସେମାନେ ଆଜି ତାଙ୍କର ଯାତ୍ରା ଆରମ୍ଭ କରିଛନ୍ତି । ଗାଁଟିରେ ପାଠକ ତ ନାହାନ୍ତି । ତେବେ ସେମାନେ ବା ପାଇବେ କେଉଁଠୁ ?

ଏମିତି ବହିମାନେ ଚାଲି ଥାନ୍ତି । କିଛି ସମୟ ଚାଲିଲା ପରେ ସେମାନେ ଦେଖିଲେ ଧାନ କ୍ଷେତ କଡରେ ଜଣେ ଚାଷୀ ମୁଣ୍ଡରେ ହାତ ଦେଇ ବସିଛି । ତାର କାନ୍ଧ ଉପରେ ବହିଟିଏ ଥିଲା । ସେ ତାକୁ ଦେଖି ଖୁସି ହୋଇଗଲା । ବିଲ ହୁଡାରେ ଡେଇଁ ଡେଇଁକା ସେ ଚାଷୀ ପାଖରେ ପହଞ୍ଚିଗଲା ।

ବହି ଚାରିଆଡକୁ ଆଖି ପକାଇଲା । ଦେଖିଲା, କ୍ଷେତରେ ଟମାଟ ଗଛଗୁଡିକ ଭଲ ଉଠିଥିଲା । କିନ୍ତୁ ଫୁଲ ଧରି ଆସିଲା ବେଳକୁ ସେଥିରେ ଫଳ ପୋକ ଲାଗିଲେ । ସବୁ ଗଛର ଅଗରେ ଏତେ ପୋକ ଲାଗିଥିଲେ ଯେ, ଏଗୁଡିକ ପାଣ୍ଡିଆ ଦେଖା ଯାଉଥିଲା । ଚାଷୀ କେତେ ଚେଷ୍ଟା କଲା । କିନ୍ତୁ ସେଗୁଡିକୁ ହଟାଇ ପାରିଲା ନାହିଁ । ଧାର ଉଧାର କରି ସେ ବଜାରରୁ ଭଲ ମାନର ଚାରା କିଣି ଆଣିଥିଲା । ଫସଲ ଭଲ ହେଲେ ସେ ଋଣ ସୁଝିବା ସାଙ୍ଗକୁ କିଛିଟା ଲାଭ କରିବାର ଆଶା



ଚକ୍ଷୁଥିଲା । ତା'ର ଏହି ଆଶା ମଉଳିବାକୁ ବସିଥାଏ । ସେ ଗାଁରେ ସଭିଙ୍କୁ ପଚାରିଲା । ଗଛ ଉପରେ ପାଉଁଶ ଛିଞ୍ଚିଥିଲା । କିନ୍ତୁ ଜଉ ପୋକ ମଲେନି କି ଗଲେନି । ଆଖି ଆଗରେ ତା ଫସଲ ଉଜୁଡି ଯିବାକୁ ଦେଖି ତାକୁ ବହୁତ ବାଧୁଥାଏ ।

ବହି ଏଥର ତା' ପୃଷ୍ଠାକୁ ଖୋଲି ଚାଲିଲା । ତାର ଫଡ ଫଡ ଶବ୍ଦ ଶୁଣି ଚାଷୀ ମୁହଁ ଟେକି ଚାହିଁଲା । ଚାଷ ବହି ସେତେବେଳକୁ ତା'ର ଜଉ ପୋକ ଲେଖାଟିକୁ ମେଲି ଧରିଥାଏ । ଏଥିରେ ଜଉ ପୋକ ହଟାଇବା କୌଶଳ ସବୁ ଲେଖାଥାଏ । ଗଛରେ ପାଉଁଶ ଛିଞ୍ଚିବା କଥା ଛଡା

ଆହୁରି ଅନେକ କୌଶଳ ରହିଥାଏ । ଦେଶ ବିଦେଶରେ ଜଉ ପୋକ ହଟାଇବା ପାଇଁ କେଉଁ ଢାଞ୍ଚାରେ କ'ଣ କରା ଯାଇଥାଏ, ସେ ସବୁକୁ ଚିତ୍ର ସହିତ ବୁଝା ଯାଇଥାଏ । ଏଥିରୁ ଗୋଟିଏ ସଫଳ କୌଶଳ ଥିଲା "ପାରୁଡା ପୋକ ଦ୍ୱାରା ଜଉ ପୋକ ଦମନ ।" କିଛି ପାରୁଡା ପୋକକୁ ଛାଡି ଦେଲେ ସେମାନେ ଜଉ ପୋକଙ୍କୁ ଖାଇ ସଫା କରି ଦିଅନ୍ତି ।

ଏହା ଚାଷୀ ମନକୁ ପାଇଗଲା । ସେ ଖୁସିରେ ଡାଡି ଝୁଡି ହୋଇ ଉଠିଲା । ବହିଟିକୁ କୋଳେଇ ନେଇ ଏହାର ଅନ୍ୟ ପର୍ଦ୍ଦଗୁଡିକୁ ଦେଖିଲା । ଏ ସବୁକୁ ଦେଖି ତା' ଆଖି ଖୋସି ହୋଇଗଲା । ଚାଷର ବିଭିନ୍ନ ଦିଗ ବିଷୟରେ ଏଥିରେ କେତେ ନୂଆ ନୂଆ କଥା ଲେଖା ଥିଲା ।

ତାଙ୍କ ଗାଁରେ କେହି ବି ଏସବୁ ବିଷୟରେ ଜାଣି ନଥିଲେ । ସମସ୍ତେ ପୁରୁଣା ଢାଞ୍ଚାରେ ହିଁ କାମ ଚଳାଇ ଆସୁଥିଲେ । ଯେତେ ଖଟିଲେ ବି ସେମାନଙ୍କ ଘରର ପେଟ ପୂରୁ ନଥିଲା । କିନ୍ତୁ ଦେଶ ବିଦେଶରେ ଯଥେଷ୍ଟ କମ୍ ପରିଶ୍ରମରେ ଅଧିକ ଉତ୍ପାଦନ ଓ ଲାଭ ମିଳେ । ସେମାନେ ବିବିଧ ନୂଆ କୌଶଳରେ ଚାଷ କରନ୍ତି । ଏସବୁ ଦେଖି ଚାଷୀ ଆନନ୍ଦରେ କୁରୁଳି ଉଠିଲା ।

ସେ ବଡ଼ ପାଟିରେ ଡାକ ପକାଇଲା, "ସନ୍ତୁ...ନଟ...ଏକାଦଶୀ...ଚମ୍ପା...ଯୁଗଳ ଦା'...କୁଶିଆ ନା'...ଆସ, ଆସ ।

ଚାଲିଦି ଆସ ।'' ତା ଅଡ଼ଙ୍କିଆ ଡାକ ଶୁଣି ଚାରିଆଡୁ କେତେ ଚାଷୀ, ଚାଷୁଣୀ ଧାଇଁ ଆସିଲେ । ଦେଖିଲେ ହାତରେ ବହି ଖଣ୍ଡିଏ ଧରି ନବ ମନ ଖୁସିରେ ନାଚିବାରେ ଲାଗିଛି । ସଭିଙ୍କୁ ପାଇ ସେ ଆହୁରି ଖୁସି ହୋଇଗଲା । ଚକାମାଡି ବସି ସେ ବହିଟିକୁ ଖୋଲିଲା ।

ସମସ୍ତେ ତାକୁ ଘେରି ବସିଲେ । ଗୋଟିଏ ପରେ ଗୋଟିଏ ପୃଷ୍ଠା ଓଲଟାଇ ସେ ସମସ୍ତଙ୍କୁ ଚାଷ ବିଷୟରେ କେତେ ନୂଆ ନୂଆ କଥା କହିଗଲା । ଚିତ୍ର ଦେଖାଇ ସେ ବୁଝାଇ ଦେଉଥାଏ । ସମସ୍ତେ ତା' ଠାରୁ ଏତେ ନୂଆ ନୂଆ କଥା ଶୁଣି ବାବା ହୋଇ ଯାଉଥାନ୍ତି । ଏତିକିଟିଏ ବହି ଯେ ମଣିଷକୁ ଏତେ ଚିନ୍ତା ଓ ବାଟ ଯୋଗାଇ ଦେଇପାରେ ... ସେମାନେ ଏ କଥା ବିଶ୍ୱାସ କରିପାରୁ ନଥିଲେ । ଜଣକ ପରେ ଜଣେ ବହିଟିକୁ ହାତ ନେଇ ମନ ଖୁସିରେ ଦେଖିବାରେ ଲାଗିଲେ ।

ବହି ଭିତରେ ତିନୋଟି ସାତକାନୁଡା ଛପି କରି ରହିଥିଲେ । ସେମାନେ ବହିଟିକୁ ନଷ୍ଟ କରିବାରେ ଲାଗିଥିଲେ । ଏବେ ସେମାନେ କ'ଣ କରିବେ ? ବହିମାନେ ତ ତାଙ୍କର ସାଙ୍ଗ ପାଇଗଲେ । ପୃଷ୍ଠା ଓଲଟାଇଲା ବେଳେ ମଣିଷ ଆଖିରେ ପଡ଼ିଗଲେ ବିପଦ । ସେମାନେ ଖୁବ୍ ଜୋର୍‌ରେ ଦଉଡି ଯାଇ ଅନ୍ଧାରୁଆ ଜାଗାରେ ଲୁଚି ଯାଉଥାନ୍ତି । ଗାଁର ଯୁଗଳ ବା' ଏହା ଦେଖିନେଲା । ତା' ଠାରୁ ସୂଚନା ପାଇ ଲୋକମାନେ ଲଗି ପଡ଼ିଲେ । ଅଳ୍ପ ସମୟ ଭିତରେ ସେମାନେ ତିନିଟା ସାତକାନୁଡା ଶବକୁ ବାହାରକୁ ଫିଙ୍ଗି ଦେଲେ ।

ଏ ସମୟରେ ଗାଁ ଭିତରୁ ଖୁବ୍ ଜୋର୍‌ରେ କୋଳାହଳ ଶୁଭିଲା । ବିଶେଷ କରି ମହିଳା ଓ ପିଲାଙ୍କର ପାଟି ଜୋର୍‌ରେ ଶୁଭୁଥାଏ । ସମସ୍ତେ ଚାଷ ବହିଟି ସହିତ ସେ ପାଖକୁ ଦଉଡିଲେ । ସନେଇ ବୋଉର ରୋଷେଇ ଘରେ ସମସ୍ତେ ରୁଣ୍ଡ ହୋଇ ଥାନ୍ତି । ସନେଇ ବୋଉ ଖଣ୍ଡିଏ ବହିକୁ ଖୋଲି ସମସ୍ତଙ୍କୁ କ'ଣ ବୁଝାଇ ଚାଲିଥାଏ ।

ତାକୁ ବି ବହି ଚୁମ୍ବକ ଲାଗି ଯାଇଥାଏ । ସେ ଆଜି ଭୁଲରେ ତରକାରୀରେ ମୁଠାଏ ଲୁଣ ପକାଇ ଦେଇଥିଲା । ଶାଶୁଙ୍କଠୁ ଗାଳି ଖାଇବା ଭୟରେ କ'ଣ କରିବ




ଭାବି ସେ ମୁହଁ ଶୁଖାଇ ବସିଥିଲା । କିନ୍ତୁ ରୋଷେଇ ବହିଟି ତାକୁ ଏହା ସୁଧାରିବା ବାଟଟି ବତାଇ ଦେଲା । ଖାଲି ସେତିକି ନୁହେଁ ସେ ଆଜି ସନେଇ ବୋଉକୁ କେତେ ନୂଆ ନୂଆ ରୋଷେଇର ବାଟ ବି ବତାଇ ଦେଇଛି । ତା' ଘରେ ସମସ୍ତେ ଏଥର ତା' ଉପରେ ଖୁସି ହୋଇଯିବେ । ତା' ଡାକରେ ପାଖ ପଡିଶାର ମହିଳାମାନେ ବି କେତେ କଥା ଶିଖି ପାରିଲେ । ସମସ୍ତେ ବହିଟକୁ ଝାଡି ଝୁଡି ସଫା କରି ଦେଲେ । ଏହାର କେତୋଟି ଜାଗାରେ ମୂଷା ଦାନ୍ତ ବାଜିଥିଲା । ସେମାନେ ଅଠା ମତାଇ ଏହାକୁ ସଜାଡି ଦେଲେ ।

ଏହା ଖାଲି ଚାଷୀ ନବ ବା, ସନେଇ ବୋଉର କାହାଣୀ ନଥିଲା, ଗାଁ ସାରା ବହିମାନଙ୍କର ପାଠକ ଖୋଜା ଅଭିଯାନ ମାତି ଯାଇଥିଲା । ସାହି ସାହିରେ ଲୋକମାନେ ନିଜ ରଚିର ବହିକୁ ଖୋଲି ଦେଖି ଚାଲିଥିଲେ । ସେମାନେ ଆଜି ଏକ

ନୂଆ ଦୁନିଆରେ ଥିବାର ଅନୁଭବ କରି ପାରୁଥିଲେ । ବହି ଭିତରେ ଯାହା ମଇଳା ଲାଗିଥିଲା, ସେମାନେ ସେଗୁଡ଼ିକୁ ପୋଛି ପାଛି ସଫା କରି ଦେଉଥିଲେ । ପୋକଗୁଡ଼ିକୁ ମାରି ଦେଉଥିଲେ । ବହିଗୁଡ଼ିକ ଦେହରେ ମୋଟା ମଲାଟ ମଡ଼ାଇ ଦେଉଥିଲେ । ଯେଉଁ ବହିଗୁଡ଼ିକର ମଲାଟ ଓ ଭିତର ଲେଖା ଚିରି ଯାଇଥିଲା ? ସେଗୁଡ଼ିକୁ ସେମାନେ ସହରର ବହି ବନ୍ଧାଇ ଦୋକାନକୁ ନେଇଗଲେ । ସେଠାରେ ସେମାନେ ଏଗୁଡ଼ିକର ମରାମତି କରି ଦେଲେ ।

ଗାଁର କିଛି ଲୋକ ଝାଡୁ ଧରି ବହିଘରକୁ ଚାଲିଲେ । ବାବୁଲି ଏ ଯାଏଁ ଫେରି ନଥାଏ । ସେମାନେ ଘରଟିର ସବୁ ଝରକାକୁ ଖୋଲି ଦେଲେ । ଘର ଭିତରର ମଇଳା ରୂପ ଦେଖି ତାଙ୍କୁ ଖୁବ୍ ଲାଜ ମାଡ଼ିଲା । ସେମାନେ ଝାଡୁ ମାରି ବୁଢ଼ିଆଣୀ ଜାଲ ଓ ଧୂଳି ସଫା କଲେ ମୂଷା, ଅସରପା, ଉଇ କାହାକୁ ବି ସେମାନେ ଛାଡ଼ିଲେ ନାହିଁ । ଘରଟିକୁ ସଫା କଲା ପରେ ସେମାନେ ଏହାକୁ ଓଦା କନାରେ ପୋଛିଲେ ।

ଏଥର ଘରଟି ଆଗପରିକା ସଫା ଓ ସୁନ୍ଦର ଦେଖାଗଲା । ଗାଁର ବଢ଼େଇମାନେ ଲାଗି ଏହାର ଥାକଗୁଡ଼ିକର ମରାମତି କରିଦେଲେ । ଏଥର ବହିଗୁଡ଼ିକୁ ଆଗ ପରିକା ସଜାଡ଼ି ରଖିଦେଲେ । ଘରଟି ଆଗପରିକା ଦେଖାଗଲା । ଗତଥର ଲୋକମାନେ ବୁଢ଼ା ବୁଢ଼ୀଙ୍କ କଥାରେ ବହି ଦେଖିବାକୁ ଆସିଥିଲେ । କିନ୍ତୁ ଏଥର ସେମାନେ ବହିଗୁଡ଼ିକୁ ଚିହ୍ନି ପାରିଥିଲେ ଓ ନିଜ ଭିତର ଡାକରାରେ ହିଁ ଏଠାକୁ ଆସିଥିଲେ ।

ବାବୁଲି ସନ୍ଧ୍ୟା ବେଳକୁ ଫେରିଲା ବେଳକୁ ବହି ଘରଟିର ରୂପ ବଦଳି ଯାଇଥାଏ । ସେ ବହି ଘରଟିର ଯତ୍ନ ନେଇ ନଥିବାରୁ ତାକୁ ନିଜକୁ ଖରାପ ଲାଗିଲା । କିନ୍ତୁ ଗାଁ ଲୋକ ତାକୁ କିଛି କହିଲେ ନାହିଁ । ତାଙ୍କୁ ବି ନିଜକୁ ଖରାପ ଲାଗୁଥିଲା । ସେମାନେ ବହି ପଢ଼ିବାକୁ ଆସିଥିଲେ ଏସବୁ ଜମା ହୋଇ ନଥାନ୍ତା । କେତେ ଜଣ ଲୋକ ବାବୁଲିକୁ କଥା ଦେଲେ, ସେମାନେ ବି ତା' ସହ ବହି ଘରଟିର ଯତ୍ନ ନେବେ । ଏ କଥା ଶୁଣି ବାବୁଲିକୁ ଖୁସି ଲାଗିଲା । ସେ ବି ଉତ୍ସାହରେ ଅଣ୍ଟା ଭିଡ଼ିଲା ।

ଗାଁଟିରେ ଲୋକଙ୍କର ଜ୍ଞାନର ବିକାଶ ପାଇଁ ସ୍କୁଲ ଖୋଲା ଯାଉଥିଲା । ସରକାରଙ୍କ ଚେଷ୍ଟାରେ ସ୍ୱେଚ୍ଛାସେବୀ ସଂସ୍ଥା ସବୁ ତାଙ୍କର ଉଚ୍ଚ କାଛଗୁଡିକରେ ବିବିଧ ବିକାଶ ଯୋଜନା ଓ ସ୍ଲୋଗାନ୍ ଲେଖି ଥିଲେ । ଏ ଗାଁର ପଣ୍ଡିତ, ପୁରୋହିତମାନେ ନିଜ ରଙ୍ଗ, ବାସ ଓ ବଚନରେ ଗାଁକୁ ଥରାଇ ପକାଉଥିଲେ । କିନ୍ତୁ ଏ ଯାଏଁ ମଣିଷ ଅସଲରେ ଉଧେଇବାର କୌଣସି ସୂଚନା ହିଁ ମିଳୁ ନଥିଲା ।

କିନ୍ତୁ ବହି ଘରଟି ଗାଁରେ ଏକ ନୂଆ ଧାରା ଆଣିଦେଲା । ଏହା ଏଠାରେ ଜ୍ଞାନ ବିଜ୍ଞାନର ଏକ ମନ୍ଦିର ହୋଇଗଲା । ପ୍ରତିଦିନ ଏଠାରୁ ଟିକିଏ ଆଲୁଅ ପାଇବା ପାଇଁ ଲୋକଙ୍କର ଧାଡି ଲାଗିଲା । ବହି ଘରଟିର ରୂପ ବି ବେଳକୁ ବେଳ ଅଧିକ ସୁନ୍ଦର ହେବାରେ ଲାଗିଲା । ପ୍ରତି ଲୋକଙ୍କ ରୁଚି, ସ୍ୱପ୍ନ ଓ ଜୀବନକୁ ନେଇ ନୂଆ ନୂଆ ବହି ଆସିଲା । ବହି ଘରର ରୂପ ଅନୁସାରେ ଗାଁ ଓ ଲୋକଙ୍କର ରୂପ ବି ବଦଳିବାରେ ଲାଗିଲା । ବୁଢା, ବୁଢୀଙ୍କର ସ୍ୱପ୍ନଟି ସତ ହୋଇ ପାରିଲା ।

ପୃଥିବୀରେ ବହି ଘରଗୁଡିକ ସବୁବେଳେ ଜ୍ଞାନ ଓ ବିଦ୍ୟାର ମନ୍ଦିର । ବିଭିନ୍ନ ଯୁଦ୍ଧ ଓ ଅଭିଯାନ ବଳରେ ଯେତିକି ଲୋକ ମୁକ୍ତି ପାଇ ନାହାନ୍ତି, ତା ଅପେକ୍ଷା ବହି ମାଧ୍ୟମରେ ବେଶୀ ଲୋକ ମୁକ୍ତିର ସୁଆଦ ଚାଖିଛନ୍ତି । ଏ ଦିଗରୁ ଦେଖିଲେ ବହି ଗୁଡିକ ଖାଲି କାଗଜ ଓ କାଳିର ମିଶ୍ରଣ ନୁହନ୍ତି । ବରଂ ପ୍ରତ୍ୟେକ ବହି ଆଶା ଓ ଜ୍ଞାନର ଆଲୋକ ଶିଖାଟିଏ ପରି କାମ କରେ ।

ଯେଉଁ ସମାଜ ବହିର ମୂଲକୁ ବୁଝିଛି, ସେ ସେତିକି ଆଗେଇଛି । ସେଠାରେ ସେତିକି ବହି କାମରେ ଲାଗିଛି, ସେତିକି ନୂଆ ବହି ଲେଖା ହୋଇ ପାରିଛି । କିନ୍ତୁ ଯେଉଁଠି ବହିର ଆଦର ନାହିଁ, ସେଠାରେ ଏହା ପଚା ଫଳ ପରି ସଡିଛି । ସେ ଜାତି ସେତିକି ଅନ୍ଧାରରେ ହଜିଛି ।

*ଆସନ୍ତୁ ଦେଖିବା..... ଆମ ଘରର ବହିଙ୍କର ଅବସ୍ଥା ଏପରି ହୋଇନି ତ ? ତାଙ୍କୁ ବି ପାଠକ ଖୋଜାରେ ବାହାରିବାକୁ ପଡିବନି ତ ?*

